ପୁସ୍ତକର ବଲକ୍ଷ ଉପରେ ପ୍ରକାଶକଙ୍କ ସ୍ୱାକ୍ଷର ନଥିଲେ
ପୁସ୍ତକ ଅପହୃତ ବୋଲି ବୋଧ କରିବେ ।

ଭଜଗୋବିନ୍ଦ

# ଭକ୍ତବନ୍ଧୁ ସଂକୀର୍ତ୍ତନ

---

ଶ୍ରୀ ମହାଦେବ ପାଲ ଶର୍ମ୍ମାଙ୍କ ଦ୍ୱାରା
ପ୍ରଣୀତ ଓ ପ୍ରକାଶିତ

ପ୍ରଥମ ସଂସ୍କରଣ

ପ୍ରାପ୍ତିସ୍ଥାନ—ମହାଦେବ ପାଲ ଶର୍ମ୍ମା
ଗ୍ରା. ପାଟପୁର
ପୋ—ପଦ୍ମକୋଟ



ମୁଦ୍ରାକର—ଶ୍ରୀ ଶ୍ୟାମସୁନ୍ଦରପାଢ଼ୀ
ଶାରଦା ପ୍ରେସ୍
ବ୍ରହ୍ମପୁର (ଗଞ୍ଜାମ) ୧୯୩୬

ମୂଲ୍ୟ ୬ ୦ ୵ ଦୁଇ ଅଣା ।

ଭଜ ଗୋବିନ୍ଦ

# ଭକ୍ତବନ୍ଧୁ ସଂକୀର୍ତ୍ତନ



ଦିନେ କୃଷ୍ଣଚନ୍ଦ୍ର, ଦଧି କ୍ଷୀର ସବୁ ଖାଇ ।
ସେ ଭାଣ୍ଡ ଗଡ଼ାଇ ଭାଙ୍ଗି, ଶୋଇଛନ୍ତି ଯାଇ ।
ଡର ଚିତ୍ତରେ ନ ଥାଇ
ଧୀରେ ଶୋଇଛନ୍ତି କାହ୍ନୁ ବାଙ୍କେ ଗୃହଁ । ୧ ।
ଗୃହକାର୍ଯ୍ୟ କରୁଥିଲେ, ଯଶୋବନ୍ତି ରାଣୀ
ପୁତ୍ରଙ୍କୁ ଡାକନ୍ତି ବାପ ଆହେ ନୀଳମଣି ।
ମାତା କୋଳରେ ଯଇଲେ
କେତେ ମିଠ ବାକ୍ୟ କହି ନୃତ୍ୟକଲେ । ୨ ।
ଭଣ୍ଡ ଖାଲି ଦେଖି ରାଣୀ, ବୋଲନ୍ତି ଶ୍ରୀଧର ।
ଏତେ ଦଧି କ୍ଷୀର ମୋର, କଲୁ ନାଶ ଖାଇ ।
ଅଛ ଯିବୁ ରେ ତୁ କାହିଁ
ମୋତେ ଛିକେ କହିଲେ ତୋର ଡର ନାହିଁ । ୩ ।
ନନ୍ଦ ନନ୍ଦ ଏହିପରି, କରୁଥାନ୍ତି ମୋତେ ।
ତାର ପ୍ରତିଫଳ ଅଜ, ଦେବ ରହ ତୋତେ ।
ଅଜା ଗଣ୍ଠିକୁ ଭୁଲିବେ
ମନେ ରହିଥିବ ଏହି ଥରକରେ । ୪ ।
ନନ୍ଦ ଖାଉଛୁ ତୁ ଯାହା, ଜାଣିଛୁ ତୋ ପାଇଁ ।
କେମନ୍ତ ମଧୁର ଅଛି, ଜାଣିବ ତୋ ପିଠି ।
ଗଣ୍ଠି କହିବରେ ରହ
ତାକୁ ବୁଝାଇ କହିବୁ ପୁନା ପୁଅ । ୫ ।

ନବନୀତ ବଦନର ଦଧିହାଣ୍ଡି ଥିଲା ମୋର ।
ତାହା କାଁପା ଭାଙ୍ଗିଦେଲୁ ଦୁର୍ଦ୍ଦଣ୍ଡ କୁମର ।
ଏହା କୋ ମାତା ସହିବ
ଅଜ ବିବିଧ ମାଡ଼ତ ଛାଟ ଦେବ ।୬
ଗୋଟିକ କୁମର ବୋଲି ମୁଁ ପେଟେ ବହିଲି ।
ସେଉଁକ ଘଣା କରୁଛି, ମନେ କଷ ଭାଳି ।
ଏହା ଦେବାକୁ ବୁଝାଇ
ଏବେ କହିଦେବି ତାଙ୍କ ଆଗେ ଯାଇ । ୭ ।
ମାତାଠୁ ଏବାଣି ଶୁଣି ଡର ଡର ହୋଇ ।
ଘରରୁ ବାହାର ଦାଣ୍ଡେ ଧାଇଁଲେ କହାଇ ।
ମାତା କ୍ରୋଧରେ ଛାଟକୁ
ଧରି ଧାଇଁ ଗଲେ ପୁତ୍ର ପିଟିବାକୁ । ୮ ।
ନିକଟେ ଥିଲା ସବ ଏ ଦଶନ୍ତ କେଶବ ।
ଯାର ଅନ୍ତ ଅନ୍ତ ନାହିଁ କେ ଯନ ଯାଉବ ।
ଥିବ ରହିଲେ ଜନନୀ
ମେଘ ଗୃହିଁ ଛନ୍ତି ଧିରେ ବେଣୁପାଣି । ୯ ।
ବୋଲୁଛନ୍ତି ବଂଶିଧର ଖଣ୍ଡେ ଦୂରେ ରହି ।
ମିଛକଥା ଅଙ୍କ ମାତା କହୁଛୁ କି ପାଇଁ ।
ଦଧି କେ ଜାଣି କେ ନେଲା
ମତେ ଦଣ୍ଡିବାକୁ ତୁମ୍ଭ ମନେ ଥିଲା । ୧୦ ।
ନଦେ ଶୋଇଥିଲି ମୁଁ ତ କିଛି ଜାଣିନାହିଁ ।
ମିଛୁଆର ସଂକାରେ ଭଡ଼ୀ ଖାଇଥିବ ଯାଇ ।
ଦିକା ଛୁଣ୍ଡାଇ ସେ ଥିବ
ହାଣ୍ଡି ତଳ ପଡ଼ି ଭାଙ୍ଗି ଯାଇଥିବ । ୧୧ ।
ମୋତେ ଏଥିର ଦୂଷଣ ନଦିଅଗୋ ମାତ ।

ଦୋଷ ଚକ୍ଷୁ କରନାହିଁ ମୁଁ ଯାତ୍ରୀମାତ୍ରରତ ।
ମୋତେ ମାରନା ମାଉଳୀ
ଦ୍ୱିଜ ମହାଦେବଙ୍କ ଅଳଙ୍କ ରଚନା । ୧୨ ।



ମଦନ ମୋହନ ମୁରଲୀଧାରୀ ।
ମାଧବ ମୁକୁନ୍ଦ ମୁର ଅରି ।
ଯେହୁ ପ୍ରଭୁ ପାଦ ଭଜରେ ମନ ।
ଅନ୍ତ୍ୟଜନ୍ମ ଏଜୀବ ହେବ କାରଣ ।
ଭକ୍ତ ସର୍ବେ ବହୁ କରନ୍ତେ ଧ୍ୟାନ ।
ଜନ୍ମାର୍ଜିତ ପାପ ହେବ ଦହନ ।
ନନ୍ଦରାଣୀ କୋଳନ୍ତୁ ମୋ କେଡ଼େ ଧର୍ମସ୍ଥାନ ।
ଓଦଣ୍ଡ ହୋଇଲା ମୋର ଏକଇ ନନ୍ଦନ ।
(କେତେ) ବୁଝାଇ କହିଲେ
(ତେବେ) ନ ବୁଝିଲ କଥା ଛଟଳ ହେଲେ । ୧ ।
ଅଳକ ବାଳକ ଅଛନ୍ତି ଏବ୍ରଜପୁରେ ।
ଏହାପରି କାହାକୁ ମୁଁ ନ ଦେଖେ ନେତ୍ରରେ ।
ମୋର କର୍ମକୁ ଗୃହିଣ
ଫଳ ଫଳନ୍ତ ଅଛି ତା କେ କରେ ଅନ । ୨ ।
ବୃନ୍ଦାବନେ ଧାଡା ଦେଲେ ଏକଇ ନନ୍ଦନ ।
ତାର ଚିନ୍ତା କରିବାକୁ ହେଲା ନିଶିଦିନ ।
(ଯହିଁ) ଭଲ ହଠ ହଠା
(କେତେ) ଶୁଣାଉଛି ଅଛୁ ଏ ଠୋକା ବେଠା । ୩ ।
ଜନ୍ମ ଭର ଅଛିବୋଲି ଏହାର ଅର୍ଜନ ।

ସହୁଛ ବୃଦ୍ଧ କାଳରେ ଅଙ୍ଗ ମୋସଂଖାଳ ।
(ଗ୍ରାନ) ମହାଦେବ କହୁ
(ରଧା) ଭକ୍ତଙ୍କ ପାଦପଦ୍ମ ଧ୍ୟାଇ । ୪ ।



ବଟୁଆ ନାଗର କାହ୍ନୁ ଗୋପୀ ଦ୍ୱାରେ ଯାଇ ।
ଅନାଇ ଛନ୍ତି ଗୃହକୁ କେ ଅଛୁ କ ନାହିଁ ।
(ଗୋପୀ) କାହାନ୍ତି କେ ଘରେ
ସର୍ବେ ଯାଇଛନ୍ତି ଜଳ ଅଣି ବାରେ । ୧ ।
ଗୃହେ ପଶି ଦଧି ଦୁଗ୍ଧ ହରି ଖାଇ ଦେଇ ।
ଦାଣ୍ଡ ଦ୍ୱାରେ ଶ୍ରୀହରି ଛନ୍ତି ବଟୁଅ କହାଇ ।
(ଗୋପୀ) ଅସିବା ଦେଖିଣ ।
କୃଷ୍ଣ ମନକଲେ ଶୀଘ୍ର ଛନ ଛନ । ୨ ।
ଯେଣ୍ଡା ଗୃହେ ବ୍ରଜବାଳୀ ଯାଇ ପ୍ରବେଶିଲେ ।
ଦଧି କ୍ଷୀର କଛୁ ନାହିଁ ନେତ୍ରରେ ଦେଖିଲେ ।
(ମନେ) ବଚନ୍ତି ବଚ୍ଚର
କାହ୍ନୁ ଏକାସି ନା ଏହି ବ୍ରଜେ ଚୋର । ୩ ।
ପ୍ରତିଦିନ ଏହିପରି ଖାଇଦେଲା ସେହି ।
କହିବା ଏହାର ବାଧ କାହାଅଗେ ଯାଇ ।
ଅମ୍ଭ ଦୁଃଖ କେ ଯାଣିବ ।
ପ୍ରଭୁ ସାହାହେବେ କହେ ମହାଦେବ । ୪



## ଜଳକେଳି

କରନ୍ତି ସର୍ବ ବ୍ରଜବାଳୀ ହୋ ଜଳକେଳୀ । ପଦ ।
କାଢ଼ି ଅଙ୍ଗରୁ ବସନ, ଯମୁନାତଟେ ରଖିଣ ।
ଧ୍ୟାନକଲେ ଷୋଡଶ ବାଳୀହେ । ୧ ।

ସେ ଘନଶ୍ୟାମ ସୁନ୍ଦର,   ଜାଣିଲେ ଏ ପ୍ରକାର
ତହିଁ ପ୍ରବେଶ ବନମାଳୀ ହେ ।୨।
କଦମ୍ବ ବୃକ୍ଷେ ଚଢ଼ିଲେ,   ପବନକୁ ଆଜ୍ଞା ଦେଲେ ।
ଯାଅ ଯମୁନା କୂଳେ ଚଞ୍ଚଳେ ହେ ।୩।
ଗୋପୀଏ ରଖି ବସନ,   କରନ୍ତି ସେ ଜଳେ ସ୍ନାନ
ତାହା ଘେନଣ ଅସ ଗଳିହେ ।୪।
ସକଳେ ସ୍ନାନ ସାରଣ,   ଦେଖନ୍ତି ନାହିଁ ବସନ
ଗୋହାରନ୍ତି କେହୁ ନେଲା ବୋଲି ହେ ।୫।
ଏ ଯୋଗେ ଆଜ ଅମ୍ଭେ ଘରୁ ହେଲୁ ବାହାର ।
ପାଳଟା ବସ୍ତ୍ର କେହୁ ଆସି ନେଲା ଅମ୍ଭର ।
ଏବେ କେଉଁ ଉପାୟ ଅମ୍ଭେ କରିବା କହ ।
ସେ ତେ କି ପୁଛୁ ଦେଖ ଅମ୍ଭମାନଙ୍କ ଦେହ ।
ଉଲଗ୍ନ ହୋଇ ଜଳେ କେମନ୍ତେ ଯେ ରହିବା ।
ଏଥକୁ ଅମ୍ଭେମାନେ କି ଉପାୟ କରିବା ।
ଏକଲୁଅରେ ଗୁହିଁ ହୁଅନ୍ତି କୁହାକୁହ ।
କେତେବେଳ ଏଠାରେ ରହିବା ବନ୍ଦହୋଇ ।
ଧିକ ଏ ଯଉବନ ଧିକ ଅମ୍ଭ ଜୀବନ ।
ହାୟ ବିଧାତା କିପାଁ ନ ନେଉ ଅମ୍ଭ ପ୍ରାଣ ।
ଗୋପିଙ୍କର ଆରତ ଜାଣିଲେ [illegible]ଧାରୀ ।
କଦମ୍ବ ବୃକ୍ଷେ ରହି ବଜାଇଲେ ବଂଶୀର ।
ତାର ଅପୂର୍ବ ଧ୍ୱନି ଶୁଣି ବ୍ରଜ କାମିନୀ ।
ସଧିରେ ଗୁହିଁଦେଲେ ଦେଖନ୍ତି ବେନୁପାଣି ।
ହାନ୍ଦୋଳାରେ ଖେଳନ୍ତି ଧୀରେ ବଂଶୀ ବଜାଇ ।
ମହାଦେବ କହଇ ସେ ପାଦେ ଚିତ୍ତ ଦେଇ ।

— — — —

ଏଦଣ୍ଡା ବସ୍ତ୍ରା ଦେଲୁ ଅଗ୍ନିରେ । ବୈଶ୍ୟପାଣି । ପଦ ।

କି ଦୋଷ କରିଥିଲୁ, ଏଦଣ୍ଡ ଆଣି ଦେଲୁ
ଜଳରେ କାମ୍ପୁଅଛୁ ତରୁଣୀ ରେ । ୧ ।
ଛାଡ଼ି ନାହିଁ ହସ, ବସ୍ତ୍ର କରିଲୁ ଚୋର
ନାସ୍ତି ପାଖଣ୍ଡୀ ନନ୍ଦସୁତ ହେ । ୨ ।
ବାହୁଡ଼ି ପଲ୍ଲେ ଯାଇ, ବୁଢ଼େ ବୁଲୁରେ ଗୁହ
ମଦ୍ଧ୍ୟ ଚୋରେ ଜଣା ନାହିଁ ରେ । ୩ ।
ଆମ୍ଭେ ବ୍ରଜ ଯୁବତୀ, ସ୍ୱକୁଳ ବତୀ ସତୀ
ଯେମନ ଯାଜ ଦାସୀ ବିନନ୍ଦ ହେ । ୪ ।
ମାତା ଅଟେ କହ୍ନୁ, ଛାଡ଼ରେ ପିଠାଉରୁ
ଯେତେବ ଆମ୍ଭ ବସ୍ତ୍ର ନ ଦେବୁ ହେ । ୫ ।
କହନ୍ତି ଶ୍ୟାମ ଧନ, ତୁମ୍ଭ ବସ୍ତ୍ର ପରନ
ଯାଉ ଥିଲେ ଘରେ ଘେନଣ । ୬ ।

ଛଡ଼ାଉଳି

ଏବୁଝେ ଯଜନେ ଭଣିଲେ

ଘେନ ଯାଉଥିଲ ତୁମ୍ଭ ବସନ ପଙ୍କଜ ।
ଛଡ଼ାଇ ଆଣି ରଖିଛୁ ଏ ତ୍ରାହିଲ ବାନ୍ଧବ ।
ଯେତ୍ନା ବସ୍ତ୍ର ନିଅ ଚାଲି ବେଗ ହୋଇ ଅସ ।
ଅକାରଣେ ତପା ମୋହିତ ହେଉଛ ଅଛ ଦୋଷ ।
ତୁମ୍ଭ ପାଲଙ୍କା ବସନ ଛଡ଼ାଇ ରଖିଲ ।
ନାନା ଅପବାଦ ପୁଣି ଏବେ ମୁଁ ଶୁଣିଲ ।
ନିଜେ ଅର୍ଜିଥିବା କର୍ମ ଫଳ ମୁଁ ଭୁଞ୍ଜିଲି ।
ତତ୍ତ୍ୱେ ଦା'ସ୍ଥା ବହ ଯେ ତୁ ତୁମ୍ଭ ବସ୍ତ୍ର ଦେଲ ।

ମହାଦେବ ପାଲ

—o—

ଶ୍ରୀକୃଷ୍ଣଙ୍କ ବାଣି, ଶୁଣି ନାରୀମଣି
ମନେ ଆନନ୍ଦ ହୋଇଲେ ।
ଏହି ଅବସ୍ଥାରେ ଥିବାକି ଜଳରେ
କୁଡ଼ା କୁହି ସବେ ହେଲେ । ୧ ।
ଏକଲା ତଡ଼ାଇ, ଯାଙ୍କୁ ଲାଜ ନାହିଁ
ବସନ ରଖିଛନ୍ତି ଡ଼ାଳେ ।
ଲାଜକର ଯେବେ, ନଛିବାକି ଏବେ
ରହିକ ପାରିବା ଜଳେ । ୨ ।
ଗୃହ ଗୃହ ଯିବା, ବସନ ଆଣିବା
ଲାଜ ରଖିଲେ ନ ଚଳେ ।
ମଥା ଯୋଡ଼ି ଯିବା, ଭୟ ନ ରଖିବା
ପଡ଼ିବା ଭାଷାଦ ଚଳେ । ୩ ।
ବେନି ହସ୍ତ ନେଇ, ମର୍ମ ସ୍ଥାନେ ଦେଇ
ଗୋପବାଳୀ ଉଠିଗଲେ ।
ଲାଜ ଲାଜ ହୋଇ, ଶ୍ରୀକୃଷ୍ଣ ଗୋପଗୋଇ
ବସନ ଦିଅ ବୋଇଲେ । ୪ ।

ମହାଦେବ ପାଲ



ଯାଥିରେ ବୋଲନ୍ତି ନନ୍ଦନନ୍ଦନ ।
ବେନିହସ୍ତ ଟେକି ମାଗ ବସନ ॥
ଏବାଣି ଶୁଣିଣ ବ୍ରଜବାଳୀ ।
ବୋଲନ୍ତି କୃଷ୍ଣଙ୍କୁ ହେ ବନମାଳୀ ॥
ତୁମ୍ଭ ପଦ୍ମ ପାଦେ ଲେଉଟ ଶରଣ ।
ଦୟା କରି ଦିଅ ଅମ୍ଭ ବସନ ॥
ମାୟା ଧରି ଦୟା କରି

ଗୋପୀଙ୍କ ବଚନ ଦେଲେ
ଯେତ୍ନା ବସ୍ତ୍ର ନଷ୍ଟ କଲେ
ଯେତ୍ପାଳୟେ ଚଳଗଲେ
ଭକ୍ତ ବତ୍ସଳ ଶ୍ରୀହରି
ଭକ୍ତଙ୍କୁ କଅନ୍ତି ତାରି
ଭବବନ୍ଧୋଦୟା ହରି
ଭକ୍ତ ଯାଅନ୍ତି ତରି
ଭାବେ ହରି ପାଦ ସେବିବା ।
ଭବାର୍ଣ୍ଣବ ହେଲେ ତରିବା ।
ଭୁବନରେ ଭଜମନ
ନବୀନ ସୁନ୍ଦର ଶ୍ୟାମଘନ
ତାଙ୍କ ଶ୍ରୀ ପଦ୍ମରେ ଦିଅମନ
ଏହାରୁ ଭାଇବା ହରିଧ୍ୟାନ

ମହାଦେବ ଦାସ

—*0*—

ଜନ୍ମଅଛି ଜଗରେ ମନ
ହରିନାମ ମହାମନ୍ତ୍ର କଣ୍ଠରେ ଧ୍ୟାନ । ପଦ ।
ଦେଖାଏନ୍ତୁ ବଡ଼ ସଂସାର    ଲାଗି ଅଛି ଯେ ଖେଳଘର
ଧନ ଜନ ଯଉବନ ମାୟା ସ୍ୱପନ । ୧ ।
କେ କାହାର ମାତା ପିଅର    ବନ୍ଧୁ ମିତ ଦାର ସୋଦର
ଭବାର୍ଣ୍ଣବ ତରିବାକୁ ନାମ ଭଜନା । ୨ ।
ହରିହର ଅୟୁଷ ଚୋର    ଶେଷ ହୋଇ ଯିବ ଜୀବର
ଉଡ଼ିଯିବ ଉଡ଼ାପକ୍ଷୀ ଦେହ ଛାଡ଼ିଣ । ୩ ।
ତୁ ଯାହାକୁ ବୋଲୁଛୁ ମୋର    ସେ ତାହିଁ ନସେ କରିବ ପର
ଘରୁ ଘେନ ଯିବେ ବେଢ଼ି ନରଖିଣ । ୪ ।

ଓ ସୁନ୍ଦର ବଦନେ ଶ୍ରୀଗୋର     ଯୁଗ କାଷ୍ଠେ ହୋଇବ ସାର
ନ ଦେବେ ଯେ କେହୁ ଚିହ୍ନି ଥିବା ବର୍ଜନ । ୫ ।
ଦେଶକୁଳ ବଧୂ ପ୍ରକାଶ     କରିବେ ଯେ ଦଶା ଏଗାର
ପାଶୋରଣ ଦେବେ ସର୍ବେ ଦ୍ୱାଦଶ ଦିନ । ୬ ।
ବେଳୁ ଭାଙ୍ଗା ଭାବ ମନରେ     ବନ୍ଧ ବାନ୍ଧ ଦେବ ଉଦ୍ଧାର
ମହାଦେବ ପାଲ ଭଣେ ନାମ ସ୍ମରଣ । ୭ ।

——*:O:*——

ଅଜ କାହିଁ କି କାନ୍ଦୁ କରୁଛୁ ଅଳ ।
ଏତେ ବେଳ ଯାଏ ମୁଁ କାଖେ ଧରିଥିଲିରେ
ଦୁଃଖିସଙ୍ଗାଳ । ୧ ।
କ୍ଷୀର ସର ଲବଣୀ ଖୁଆଇ ଦେଲି ।
ଦଁ ସୁଲ ଭୁଲ ଶେଯେ ସୁଆଇ ଥିଲିରେ
ଦୁଃଖି ସଙ୍ଗାଳ । ୨ ।
ଦଧି ମନ୍ଥିବ କେତେ ବେଳେ ମୁଁ ବୋଲି ।
ଜାଣିଲୁ ନାହିଁ ବାପ ଯେତେ କହୁଥିଲିରେ
ଦୁଃଖି ସଙ୍ଗାଳ । ୩ ।
ଉଛର ହେଉଛିରେ ମୋ ଗଉମାନ ।
ପିତା ଆସିଲେ ତୋର ହୋଇବେ ରଣରେ
ଦୁଃଖି ସଙ୍ଗାଳ । ୪ ।
ପଣନ୍ତ ଧରି ଅଛୁ "ମାଁ, ମାଁ" ବୋଲି ।
ଅଳନ କରି ଦଣ୍ଡେ ନେଉ ପିଠୁଲରେ
ଦୁଃଖି ସଙ୍ଗାଳ । ୫ ।
ପୁଣି କାଖେ ଧରିବ ଯିବାରେ ବୁଲି ।
ବଣି ଦେବ ତୋ ପାଇଁ ସୁସ୍ୱାଦୁ କୋଳରେ
ଦୁଃଖି ସଙ୍ଗାଳ । ୬ ।

ମୁଁ ଧାନ ଦରିଦ୍ର ଭୁ ରଚନ ମାଳ ।
ଯିରୁ ବ ବାପ ସ୍ଵଖା ସଙ୍ଗରେ ଖେଳ
ଦୁଃଖି ସଖାଳ । ୭ ।
ସଜ୍ଞାତ ସୁପଣ୍ଡିତ ସୁବୁଦ୍ଧି ବୋଲି
ଯାଣିଛୁ ଅଜ ବକ୍ଷା କରୁ ଅର୍ଦ୍ଧଳୀ ରେ
ଦୁଃଖି ସଖାଳ । ୮ ।
କେତେ ତପସ୍ୟା ପୂର୍ବେ ମୁଁ କରିଥିଲି ।
ଏବ୍ଦ୍ଧ କାଲେ ବାପ ତୋଟେ ଲଭିଲି ରେ
ଦୁଃଖି ସଖାଳେ । ୯ ।
ଅକର ଲକ୍ଷ୍ମ ମୋ ଗଳାର ମାଳ ।
ଲୁଷଇ ମଦ୍ଧା ଦେବ ନକର ଅଳ ରେ
ଦୁଃଖି ସଖାଳ । ୧୦ ।

—0—

ଭଜ ଭୁ ଶ୍ରୀ ରାଧା ଗୋବିନ୍ଦ ଦେ ମନ ଅଙ୍କ । ପଦ ।
ମାୟା ସଂସାର ଏହୁ, ଦେହ କାହାରୁ ନାହୁଁ
ହରି ନାମଟି ଭେଳା ବାନ୍ଧ ରେ । ୧ ।
ଭୁ ଯାକୁ ବୋଲୁ ମୋର, ସ୍ନେହ କରବ ପର
ତପସ୍ୟା ଜାଲେ ନୂହବନ୍ଧ ରେ । ୨ ।
ଧନ ଧନ ଆୟୁଷ, ହୋଇ ଯାଉଛି ଶେଷ
ବେଳ ଥାଉଁ ଭୁ ବାନ୍ଧ ବନ୍ଧ ରେ
ବେନ୍ଧୁ ବାର ବାରଣି ଦର କହୁଛି ମନ
ପାନ କରବୁ ମକରନ୍ଦ ରେ । ୪ ।
ଲବେ ନମିଷେ ଦେଲେ, କାଠାକୁ ରହି ଥିଲେ
ଫିଟି ଯିବଏ ମୋହ ପାନର୍ଦ୍ଧେ । ୫ ।

ଖଣ୍ଡଇ ମହାଦେବ, ନଯାଣେ ସ୍ତୁତି ସ୍ତବ
ଦୟା କରବେ ଅଧ ଜନ ରେ । ୬ ।

———0———

ଜୟ ଶ୍ରୀ ରାଧିକେ ଜୟ ମୋହନ ।
ତବ ଶ୍ରୀ ଚରଣେ ଦଅନ୍ତୁ ସ୍ଥାନ । ୧ ।
ଏ ଦୀନ ଅଧମ ଗଲା ଶରଣ ।
ନଜାଣଇ ସ୍ତୁତି ସ୍ତବ ବଚନ । ୨ ।
ମାୟାରେ ପଡ଼ି ମୁଁ ହାରଇ ଜ୍ଞାନ ।
ଦିନେ ନ କରଇ ନାମ ସ୍ମରଣ । ୩ ।
ଯେଉଁ ମରୁ ଜୀବ ଯିବ ଚରଣ ।
ଏହି କୃପା କର ରାଧାରମଣ । ୪ ।
ନାମାମୃତେ ତୃପ୍ତ କର ଅପନ ।
କହେ ମହାଦେବ ଅଧମ ଦୀନ । ୫ ।

———0———

ନନ୍ଦ ସୁତ ଘନ ଶ୍ୟାମ
ଭଜ ସାଧୁ ନିତ୍ୟ ନାମ ॥
ମୁଖେ ବୋଲ ରାମ କୃଷ୍ଣ ।
ଦୂରେ ପଳାଇବ ଯମ ॥
ପୂର୍ଣ୍ଣ ହେବ ମନସ୍କାମ ।
ଅନ୍ତେ ଯିବ ସ୍ୱର୍ଗ ଧାମ ॥
ଜୟ ପ୍ରେମ ରସ ଧାମ ॥

———101———

ଜୟ ଯଦୁ ନନ୍ଦନ, ପତିତ ପାବନ
ଭଗତ ଜୀବନ ହରି ।
ମୁନି ମନ ରଞ୍ଜନ, ରାଜୀବ ଲୋଚନ

ଘନ-ଶ୍ୟାମ ବଂଶୀ ଧାରୀ । ୨ ।

ତ୍ରିଭୁବନ ପାଳନ, କାରଣ ରକ୍ଷଣ
ସଙ୍କଟ ତାରଣ କାରୀ ।
ଭକ୍ତ ହୃଦ କାଞ୍ଚନ, ଭବାର୍ଣ୍ଣବ ତାରଣ
ଦୀନ ବନ୍ଧୁ ଦଇତାରି । ୨ ।
ବ୍ରଜ ବାଳୀ ମୋହନ, ବାରଣ ତାରଣ
ଆରତ ଭଞ୍ଜନ ହରି ।
ତବ ପଦ୍ମ ଚରଣ, ଦେଅନ୍ତୁ ଦର୍ଶନ
ଦୀନ ପ୍ରତି ଦୟା କରି । ୩ ।
ସନ୍ଥ ଜନ ପାଳନ, ଗରବଗଞ୍ଜନ
ସର୍ବ ଘଟେ ଅଛପୂରି ।
ମହାଦେବ ଅଜ୍ଞାନ, କରୁଛି ଜଣାଣ
ନାମ ମୁଖେ ନଅ ତାରି । ୪ ।

—0—

ଦୀନ ବନ୍ଧୁ ଦଇତାରି । ଦେଖିବାରେ ଦୟା କରି ॥

ଅରେ ବାପ ଶ୍ୟାମଘନ
ସଖା ସଙ୍ଗେ ଲୁଚି ଗଲୁ କି ବନରେ
ଖୋଜି ଖୋଜି ନ ସରୁଛି ଦିନ, ମୋ କୃଷ୍ଣରେ । ୧ ।
ଅନ୍ଧର ଲଉଡ଼ି ମୋର
ଦରିଦ୍ର ସମ୍ପତ୍ତି ହୃଦର ହାର ରେ
ଦଶଦିଗ ଦିଶୁଛି ଅନ୍ଧାର, ମୋ କୃଷ୍ଣରେ । ୨ ।
ତୋତେ ପାସୋରିଣ ମୁହିଁ
ଏ ଜୀବନ ଧରି ନ ପାରେ ରହି ରେ
ଘଡ଼ିଏ ନ ଦେଖି ଯୁଗ ମଣଇ, ମୋ କୃଷ୍ଣରେ । ୩ ।
କୋହ୍ନ ବାବୁ ମୋ ନନ୍ଦନ

ସେବଥିଲୁ କେତେ ଦେବ ଚରଣ ରେ
ବୃଦ୍ଧେ ଲଭଛୁ ମୁଁ ତସ୍ପୃଦାନ, ମୋକୃଷ୍ଣରେ । ୪ ।
ତୁ ଏ ଜୀବର ଜୀବନ
ଘୀନ ଦରିଦ୍ରର ରତନ ଧନ ରେ
ନେତ୍ରେ ଦେଖି ଶୁଣିଭ ନାଏ ଦନ, ମୋକୃଷ୍ଣରେ । ୫ ।
କରୁଥାଉ କେତେ ଅଳି
ମା ମା ଡାକି ଦିଅ ମୋପାଇଁ ତୋଳ ରେ
ଅଙ୍କ ପାସୋରିଲୁ କି ମାଁ ବୋଲି, ମୋକୃଷ୍ଣରେ । ୬ ।
ନିଦ୍ରାରୁ ଉଠି ପ୍ରଭାତେ
ନିତ୍ୟ ଖିରପାନ ମାଗୁଥି ମୋତେ ରେ
ଆଣି କେ ଦେବ ତୋତେ ବନସ୍ତେ, ମୋକୃଷ୍ଣରେ । ୭ ।
ଦଂସିଲ ଭୁଲି ଶେଜରେ
ତୁଳୀସ ଖଟ ପଲଙ୍କ ଉପରେ ରେ
ନିଦ ନଲାଗେ ତୋତେ ସୁଖରେ, ମୋକୃଷ୍ଣରେ । ୮ ।
ଏବେ କେଉଁ ଘୋର ବନେ
ତାହିଁ ନିଦ୍ରା ଗଲୁ କେଉଁ ଆସନେ ରେ
ତାକୁ କଥା କି ନପଡ଼େ ମନେ, ମୋକୃଷ୍ଣରେ । ୯ ।
କେଉଁ ଆଣି ଦେଲା ବସ
ବନ ଫଳମୂଳ କଲୁ ତୁ ଗ୍ରାସ ରେ
ଅଙ୍ଗ ମଳଦେଲା କି ସନ୍ତୋଷ, ମୋକୃଷ୍ଣରେ । ୧୦ ।
ରଙ୍ଗିମା ଅଧରେ ହାସ
ନ ଥିବ, ବାଳ ଛାୟାକାନ୍ତିହ୍ରାସ ରେ
ବାପ ପାଇଥିବୁ କେତେ କ୍ଲେଶ, ମୋକୃଷ୍ଣରେ । ୧୧ ।
ଅଙ୍ଗ ବନ୍ଧୁଥିବ ଝାଳ
ଏ ଗ୍ରୀଷମ କାଳେ ଖରା ପ୍ରବଳ ରେ

ବନେ କାହ୍ନ ମେଳିବ ବା କଲ, ମୋକୃଷ୍ଣରେ । ୧୨ ।
ତୋର ଛନ୍ଦା ଭୋଦିବ
ନେଲୁ ନାହିଁ ଗଲୁ ବସ୍ତ୍ରାସଙ୍ଗର ରେ
ପାଦେ ମ୍ଳିବୁ କେଉଁ ପ୍ରକାର, ମୋକୃଷ୍ଣରେ । ୧୩ ।
ତୋ ମାଧୁରୀ ରୂପଦେଖି
ଏକାବନେ ମଣୁ ଥାଇ ମୁ ସଖି ରେ
ଅଙ୍କ ଖୋଲ ନେଲୁ ମୋର ଆସି, ମୋକୃଷ୍ଣରେ । ୧୪ ।
ତ୍ରିଭଙ୍ଗିମା ନଟ ବ୍ଲଲ
ଗୁଞ୍ଜ ବେଣୀ ଜୁଡ଼ା ଝେ ।ବାଙ୍କ ଚୂଳ ରେ
ବାପ ଥିବୁ ଛ ଢ଼ଳ ଢ଼ଳ, ମୋକୃଷ୍ଣରେ । ୧୫ ।
ଗାଲୋ ଗୋରଚନା ସୋହେ
ଚନ୍ଦନ ଯାଠୀ ମନ ବଶ ହୋଏ ରେ
ଏହା ଭାବୁଥିଲୁ ଛ ହୃଦରେ, ମୋକୃଷ୍ଣରେ । ୧୬ ।
କେଉଁ କାନନକୁ ଗଲୁ
କଷ୍ଟ ମୋତେ ପଦେ କହିନ ଗଲୁ ରେ
ବନାଗ୍ନିରେ ଏପିଣ୍ଡ ଦହିଲୁ, ମୋକୃଷ୍ଣରେ । ୧୭ ।
କେ ଦେବ ମୋତେ ଦେଖାଇ
ଏହିକ୍ଷଣି ମୁଁ ତ ଯାଉଥିଲୁ ଧାଇଁ ରେ
କ୍ଷିର ଦଧିଙ୍କୁ ମୁଖରେ ନେଇ, ମୋକୃଷ୍ଣରେ । ୧୮ ।
ନେଲୁ ମାଣି ବନ୍ଧୁ ଅଛୁ
ଛନ ଛନ ମନ ଥୟ ନୋହୁଛି ରେ
ଦେହ ଅସିଲା ପ୍ରାଏ ଲାଗୁଛି, ମୋକୃଷ୍ଣରେ । ୧୯ ।
ତୋପର ଅବୁଝା ସ୍ନେହ
ଏବ୍ରଜ ପୁରରେ ଦେଖାତ କାହିଁ ରେ
ମୋର କର୍ମକୁ ମିଳିଛୁ ଭୁଇ, ମୋକୃଷ୍ଣରେ । ୨୦ ।

ଜୟ ମହାମାଈ ମାତ
ମୋରେ ଅନୁଗ୍ରହ କର ବସ୍ତୁଚ ହୋ
ଶୁଣେ ଥିସମୋ ଅଜ୍ଞାନ ସ୍ତତ, ଭୋମାତ ଗୋ
ବନ୍ଦେ ମହାଦେବ ଦୀନ
ସେହନା ଚରଣେ କରଣ ଧ୍ୟାନ ହେ
ସେହୁ ନାମସ୍ମର ଯାଉଦନ, ସୁଜନହେ

———(୧୦୧)———

ଭଜରେ ମନ ରଙ୍ଗା ଚରଣ ପାପ ହେବ ଦହନ
ଚନ୍ତ୍ରେ ମନ ଛନ୍ଦାଚରଣ ଜୀବ ହେବ ତାରଣ
ଭଜ ମନ ଗୋବନ୍ଦ
ମଲ୍ଲୁନ ମାଧବ ଅଦନ୍ଦ ।
ସେହୁ ଯାଦେ ଅଛୁ ମକରନ୍ଦ ।
ଛାଡ଼ି ଯିବ ପାପ ତାପବନ୍ଦ ।

———(୧)୦(୧)———

ହରନାମ ନଉଛନେ ଚରବ ମୁଁ କପର
ଲୁସଙ୍ଗରେ ପଡ଼ି କାଛ ନେଲ ହବାସହୂସ ।
ବସସ୍ଥା ବସମ ଜାଲେ ପଡ଼ି ଜ୍ଞାନ ହାରଲ
ଗୁରୁଙ୍କର ପାଦବେନ ସେବା ହନେ ନକଲ ।
ବ ଧରଏ ଭବାର୍ଣ୍ଣବରୁ ତରବାକୁ ଖୋଜୁଛି ।
ଦସ୍ୟାକର ଦୀନବନ୍ଧୁ ଶରଣ ମୁଁ ପଶିଛି ।
ନଜାଣଇ ସ୍ତବସ୍ତୁତି ଧ୍ୟାନ ଜପା ମନ୍ତ୍ର ।
ପଢ଼ିନାହିଁ ବେଦଶାସ୍ତ୍ର ଅଜ୍ଞାନ ମୋ ଶରୀର ।
ମୋରେ ଅନୁକମ୍ପା କରୁ ଏ ଜୀବକୁ ଉଦ୍ଧାର ।
ଦୀନହୀନ ଡ଼ାକ ଶୁଣ ମହାଦେବ ଜୁହାର ।

———(୦)———

ଏକଦିନେ ଶବରଣୀ — ନାନା କୋଳି ବନୁଁ ଆଣି
ବୃକ୍ଷମୂଳରେ କହେ ବୁଲି ନିଅ କୋଳି କିଣିରେ ॥
କୋଳି କୋଳି ବୋଲି ବାଣୀ — ଶୁଣିଲେ ମୁରଲୀପାଣି
ଧାନ ଅଞ୍ଜୋଳିଏ ଧରି ଗଲେ ସେହି ଘଣିହେ ।୧।
ଶବରୀ ଅନାଇଥିଲା — କଳାକହ୍ନାଇ ଦେଖିଲା
ମନେ ବିଚାରଇ ଏଏ ଇନ୍ଦ୍ରନୀଳମଣି ହେ ।୨।
କି ଅବା ନବୀନଘନ — କି ଅବା ଦଳିତ ଅଞ୍ଜନ
ଅହାକି ଲାବଣ୍ୟ ତନୁ ତ୍ରିଭଙ୍ଗିମା ଠାଣିହେ ।୩।
କି ସୁନ୍ଦର ପଦ୍ମମୁଖ — ଚାରୁଚାହାଣି ବିଶେଷ
ଶିରେ ମୋରଚନ୍ଦ୍ର ପୁଷ୍ପେ ଲମ୍ବେ ବେଣୀହେ ॥
କରରେ କଙ୍କଣ ଶୋଭେ - ରୂପେ ଜଗଜ୍ଜନମୋହେ
କି ସୁନ୍ଦର ହାରଅଛି କଟୀରେ କିଙ୍କିଣି ହେ ।୫।
ପାଦରେ ନୂପୁର ମାଳେ — ଗମନ ମଧୁର ଚାଲେ
ଚକିତ ହୁଅନ୍ତି ଦେଖି ବରଜ ତରୁଣୀହେ ।୬।
ଶବରୀ ମାଡାରେ ଧାନ — ଦେଲେ ପ୍ରଭୁ ଭଗବାନ
ମହାନନ୍ଦ ହୋଇଲା ଜାଣି ଶବରଣୀହେ ।୭।
ବାଛି ବାଛି ସ୍ୱାଦୁ କୋଳି — ଦେଲାକ ଶବରୀ ବାଳୀ
କଳାକହ୍ନାଇ ଅଞ୍ଜୋଳି ନ ପୂରିଲା ପୁଣିହେ ।୮।
ହସି ଶବରୀକି କହିଁ — କହନ୍ତି ଭାବଗ୍ରାହୀ
ଆଉ କେତେ କୋଳି ଅଛି ଦେଆ ଶବରଣୀହେ ।୯।
ଶବରୀ ହେଲା ଆନନ୍ଦ — ଜାଣିଲା ନନ୍ଦେ ଗୋବିନ୍ଦ
ଅଞ୍ଜୋଳି ପୂରାଇ କୋଳି କାହ୍ନୁଁ ଦେବ ଆଣିହେ ॥
ମୋ ଜନ୍ମ ସଫଳ ହେଲା — ବୋଲି ମନେ ବିଚାରିଲା
ମହାଦେବ ବୋଲେ ପାଦେ ସାଷ୍ଟାଙ୍ଗେ ପଡ଼ିଲା ହେ ॥

—•(୦)•—

ନନ୍ଦରାଜାଙ୍କର ପୁତ୍ର କଳା କହ୍ନାଇ ଗୋ ମିତ
ଚୋର ଦାଉ ବ୍ରଜପୁରେ କେ ସହି ପାରିବତ ଗୋ
କେଉଁଅବା କାହିଁ ଥିବ ଘର ଏକା ଜଗିଥିବ
ଦଧି ବଢ଼ିଗଲେ ଦଣ୍ଡେ ଗୃହେ ପ୍ରବେଶିବ ଗୋ ।୨।
ଅପିଲା ବେଳକୁ ଫେରୁ ଗୋପେ ପଡ଼ିଯାଏ ହୁରି
ଲୁଚିଯାଏ ଗମ୍ଭୀରରେ ଗୃହେ ଧିର କରୁ । ୩ ।
କାହିଁ କାହିଁ ଗଲୁବୋଲି ବୋଇଲା ବେଳକୁ ଶୁଣି
ବ ଛକେ ପଳାଇଲା ଧରି ନପାରିଲି ଗୋ । ୪ ।
ପୁଚ୍ଛ ଗୋଇଛି ଦେଖିଲି ଝୁଣ୍ଟାଇ ବସାଇଦେଲି
କବେ ବ୍ରଜରାଜ ଘରେ ଯେଉଁ ପଳାଇଲୁ ଗୋ ।୫।
ଏପରି ଦୁର୍ଦ୍ଦାନ୍ତ ନେହି ତାକଥା କେ ଜାଣିନାହିଁ
ଦ୍ୱିଜ ମହାଦେବ ବୋଲେ ସେ ଜଗତ ସାଇଁ ଗୋ

—୦—

ଏକ ଗୋପୀ ବୋଲେ ଶୁଣ ଅସି ଯଶୋଦା ନନ୍ଦନ
ଦଧିଦୁଗ୍ଧ ଛେନା ଘୃତ ସରୁ କଲା ପାନ ଗୋ । ୧ ।
ଧରିବ ବୋଲନ୍ତି ମୁହିଁ ଗଲି ବେଳକୁ ମାଧୋଇ
ବାଟେ ବାଟେ ପଳାଇଲୁ ମୁକ୍ତି ହିଂସା ଦେଇ ଗୋ
ନିତ୍ୟ ଏହିପରି କଲା କେ ସହିବ ଏହା ଭଲା
ବସିବା ଜୀବକା ଗଣ୍ଡି ଏହା ଯୋଗୁ ଗଲା ।।
କପରି ଏକ୍ଷେ ଚଳିବା ତାହାଆଗେ ଯାଇ କହିବା
ମହାଦେବ ପାଇ ବୋଲେ କେମନ୍ତେ ରହିବା ।।

—୦—

ନନ୍ଦରାଜାଙ୍କର ଛୋଟା ପିଲାଟି
ଶ୍ରୀଗୋପାଇ ନେଉଛି ଦହି ଗୁଡ଼ିଟି
ଶିକ୍ୟେଁଥିଲା ଖୀର ନେଲା ସରଟି
ଠାଉଠାଉ ଖାଏ ଦେଖ ପାଟିଟି

ହଅନ୍ତରେ ଗୋବିନ୍ଦ
ମାଧବ ମୁରାରି ମୁକୁନ୍ଦ । ୧ ।
ବନ୍ଧୁ ପିତାମାତା ଅବିଚ୍ଛନ୍ଦ । ୨ ।
ଭକ୍ତିଭରେ ନୃଥ ପ୍ରେମାନନ୍ଦ । ୩ ।
ଫିଟିଯିବ ଭବ ମାୟାଫାନ୍ଦ । ୪ ।
ଛନ୍ଦାଶ୍ରୀଚରଣେ ମକରନ୍ଦ । ୫ ।
କେବଳ ଥାଉଥାଉ ବେଣ୍ଟୁବାଦ । ୬ ।

—୦○୦—

କୋଳ ଖାଇବାକୁ, ଶ୍ରୀବନମାଳି ।
ପଣନ୍ତୁ ଧବଣ, କରନ୍ତୁ ଅଳି ।
ଦଅ ମାତ ମୋତେ, ଧାନ ଅଞ୍ଜୋଳି ।
ଅଣିତ୍ତ ଯବଶ୍ରୀ ଭଳବ ଲକ୍ଷଣ
ଗାଙ୍ଗ ବର ଷୀର ଦୀବ୍ୟ କୋଳ
ଧାନ ଧର ବାନ୍ଧୁ ଗଦ୍ଦେଳ ରଳ ।।
କୋଳ ବକା ପାଦେ ଚାନ୍ଧୁଣ୍ଣେ ମେଳ ।
ବେବର ପାତୀରେ ଦେହୁଳ ଲୁଳେ ।।
ମାତା ହବ ଲୁଣି ପନ୍ଦ୍ର ଲୁହଳ ।
କୃଷ୍ଣ ବରେ ଦେଲ ଶବାଶ୍ରୀ କୋଳି ।
ଧବଣ ଚଳଲ ଶ୍ରୀବନମାଳି ।
ମହାଦେବ ଗାନ କରୁଛି ଅଳ ।।
ଦଅ ଦଉ ଭୂମେ ଶ୍ରୀପାଦ ଧୂଳ ।
ମହାନନ୍ଦେ କେ ଦେବଗ୍ନଳ ।।

—୦○୦—

ବନମାଳ ବଣ୍ଟା ଦେଲ ବନସ୍ତକୁ ଗଲେ
କାଦମ୍ବ ବୃକ୍ଷ ମୂଳେ ଯାଇ ପ୍ରବେଶିଲେ

ନିଦ୍ରା ଗଲେ କାହ୍ନାଇ । ମୋହନ ବଂଶୀକି ମସ୍ତକେ ଦେଇ ॥
ଧୀରେ ଧୀରେ ଶ୍ରୀରାଧିକେ ପ୍ରବେଶିଲେ ଯାଇ
ଅଙ୍ଗ ପଲ୍ଲୁ ବଂଶୀଗୋଟି ଆଣିଲେ ଉଠାଇ
ପଶିଲେ କୁଞ୍ଜେ ଧାଇଁ । ଭାବନ୍ତି ମନରେ ଯିବି ପଳାଇ ।୬।
ଏଣିମନ୍ତେ ନିଦ୍ରା ଭାଙ୍ଗି ଗଲା କୃଷ୍ଣଙ୍କର
ଖୋଜି ବୋଲନ୍ତି ମୋ ବଂଶୀ ନେଲା କେଉଁ ଚୋର
ଗୃହୀଛନ୍ତି ରାଧିକା ଏ ଘଟଣା ଦେଖି ହେଲେ ଚକିତା ॥
ଶ୍ରୀମାଧବ ଶୁଣି ଶ୍ରୀପତି ବୋଲନ୍ତି ବଚନ
ବଂଶୀ ଗୋଟି ଦିଅ ରାଧେ ଯିବି ମୁଁ ଏକ୍ଷଣ
ବତ୍ସା ବାଳକ କାହିଁ । କେଉଁ ଦିଗେ ଗଲେ ଚରାଇବଇଁ ॥
ତୁମ୍ଭ ଉର ପାଖେ ରଖିଅଛ ମୋହର ବଂଶୀ
ଯେତେ ଯାହା ଦିଅ କେବେ ତଳେ ପଡ଼ି ଖସି
ଜାଣି ପଡ଼ି ଗଲାଣି । ମିଛ କହ ନାହିଁ ମନେ ରାଧା ରାଣୀ ।
ରାଧିକା ବୋଲନ୍ତି ବଂଶୀ ମୁଁ ତ ନେଇନାହିଁ ।
ମିଛେ ମୋତେ ଦୂଷଣ ଦେଉଛ ତ ପାଇଁ
ହଠା ମୋର କପାଳେ । କହୁଅଛ ଥିଲି ସବୁ ବେଳେ ॥
ମାୟାଧର ମାୟା କଲେ ବଂଶୀ ପଡ଼େ ଖସି
ଆଶ୍ଚର୍ଯ୍ୟ ହୋଇଣ ରାଧା ମୌନେ ଗଲେ ବସି
ମହାଦେବ କହଇ । ବନେ ଗଲେ କୃଷ୍ଣ ବତ୍ସା ନେଇ ॥

---

ଶୁଣଥରେ ଗୋପ ଧନ, ନୟା ବତ୍ସା ନେଇମନ
ତୋତେ ତ ଅପୂର୍ବ ବାପ କହକୁ ଯେଉଁଣ ରେ
ଭଣ୍ଡାରରେ ଅଛି ଧନ, ବାଛି ବାଛି ନେଇ ଯେନ
ନାନା ରତନ ଶାଥଙ୍ଗେ ନୂଅ ଆଭରଣ । ୨ ।
ତୁ କାହିଁ ଯିବୁ କାନନ, ଗୋପାଳ ବାଳ ସଙ୍ଗେଣ

ଲକ୍ଷେ ରଖିଥିଲ ମୋର ଅଛନ୍ତି ବନ୍ଧୁଗଣ ରେ । ୩ ।
ଭକତବତ୍ସଳ ଶାଉ ଶୁଭବେ ଅଛନ୍ତି ରହି
ରାଜ ନନ୍ଦନ ବକ୍ଷ୍ୟା ଯିବୁଁ ବସ୍ତା କେଇ ରେ । ୪ ।
ଘୋର ବନେ ନାନା ଦୁଃଖ, ଦଣ୍ଡେ ମାତ୍ର ନାହିଁ ସୁଖ
ଖର ବରଷାରେ ସୁଖି ଯିବ ଚନ୍ଦ୍ର ମୁଖ ରେ । ୫ ।
ବ୍ୟାଘ୍ର ଭାଲୁ ବନ୍ୟ ଙ୍କର, ଜନ୍ତୁ ଅଛନ୍ତି ଅପାର
ଛାଙ୍କ ରବ କର୍ଣ୍ଣେ ଶୁଣି ହେବୁ ଚମକ୍ରାଇ ରେ । ୬ ।
ଚନ୍ଦ୍ରଲେଖା ବାଦ୍ଲେ ଦେଖି, ଡର ମୋ ବୋଲଉଥିପି
ମା'ମା ଭୟ ଲାଗେ ବୋଲି ବୃକ୍ଷଦେଇ ଅଛି ରେ । ୭ ।
ଦଂସ୍ତକ ତୂଳରେ ସଦେ, ନିଦ ନ ଲାଗଇ ତୋତେ
ଲେଉଡ଼ିଲେ ସେ ଖଯଖା ଅଡ୍ର ନମିଲେ ବନସ୍ତେ ରେ । ୮ ।
ତୃଷାହେଲେ ଜଳତହିଁ, ଖୋଜିଲେ ମିଳଇ ନାହିଁ
କ୍ଷୁଧା ହେଲେ ବନଫଳ ଖାଇବୁଟ ଭୁହୁ ରେ । ୯ ।
ତୋତେ ନ ଦେଖିଲେ ଦଣ୍ଡେ, ମୋ ପ୍ରାଣ ନରହେ ପିଣ୍ଡେ
ତୋପରି ଅବୁଝା ବାଳ କେ ଅଛି ବ୍ରହ୍ମାଣ୍ଡେ ରେ ।୧୦।
ବସ୍ତ୍ରା ରଖି ନଯା ତୁହ, ସେ ପଣ ମୋ ଲୋଡ଼ା ନାହିଁ
ଭାବେ ମହାଦେବ ପାଳ କୃଷ୍ଣନାମ ଧ୍ୟାଇ ହେ । ୧୧ ।

——(୦)——

ମାତା ଅସେ କୃଷ୍ଣଚନ୍ଦ୍ର କହନ୍ତି ଏମନ ।
ଜଳ ବନ୍ଧ୍ୟା କରବାରୁ ହବା ବଡ ପଣ ହେ । ୧ ।
ତୁମ୍ଭେ ବୋଲୁଅଛ ଅମ୍ଭେ ଗୋପର ରାଜନ ।
ବକ୍ଷ୍ୟାବସ୍ତା ତସାଇବ, ଏକଇ ନନ୍ଦନ ହେ । ୨ ।
ନରହୁବ ସବୁଦିନେ ଧନ ବଡ ପଣ ।
ନଜବୃତ୍ତ ନ ଶିଖିଲେ ହୁଏ ଅକାରଣ । ୩ ।
ଗଉଡ଼ ଜୀବକା ବୃତ୍ତି ପ୍ରଧାନ ଅମ୍ଭର ।

ଉତ୍ତର ବେଗରେ ଧେନୁ ବତ୍ସା ରଖିବାର ହେ । ୪ ।
ମୋହଠାରୁ ସାନ ସାନ   ବାଳକ ଅଛନ୍ତି ।
ବତ୍ସା ଚରି ବୃନ୍ଦାବନ୍ତା   ସେ ସବୁ ଜାଣନ୍ତି ହେ । ୫ ।
ଅଜଯାଏ ଗୋପାଳଙ୍କୁ   ଦେଖି ନାହିଁ ମୁହିଁ ।
ଅଚଳା ଲୋକେ ଦେଖିଲେ ଘୋଡାଅନ୍ତି ଗାଈ ହେ । ୬ ।
ବେଜ୍ଞ ଜାଇ ଭୟ ପାଇ   ଅସୁ ଯେ ଘରକୁ ।
ନାଜ ବଦ୍ୟା ନ ଶିଖିଲେ   ଅପେ ବ କାର୍ଯ୍ୟକୁ । ୭ ।
ମାତା ପିତା ଥାଉ ଥାଉ ପୁତ୍ର ମୂର୍ଖ ହେଲେ ।
ପୁଣ୍ୟ କ ଲଭବ: ଜୀବନରେ କେତେ ବେଳେ । ୮ ।
ଭୂମ୍ଭଲାଗି ଅମ୍ଭେ ନଷ୍ଟେ   ଅଯୋଗ୍ୟ ହୋଇରୁ ।
କାହିଁ ଗୋପପୁର କାହିଁ   ମଥୁରା ଇହରୁ । ୮ ।
କାହିଁ ଗଲେ ଅମ୍ଭଙ୍କୁ ଯେ   କମିଲବ ବାପ ।
ଅନ୍ୟ ବୃତ୍ତି କରିବାକୁ   ହେବ ବଡ଼କ୍ଳେଶ ହେ । ୯ ।
ମହାଦେବ ବୋଲେ ମାତ ଭୂମ୍ଭର ନନ୍ଦନ ।
ସକଳ ପ୍ରାଣୀଙ୍କ ପ୍ରାଣ   ସ୍ୱଂପୂ ନାରାୟଣ ହେ । ୧୦ ।

——(୦)——

ଶୁଣ ପଞ୍ଚ ଜନମାନେ ହେଇ ମନ ବନ୍ଧି ।
ଶ୍ରୀକୃଷ୍ଣଙ୍କ ନାମାମୃତ ସର୍ବେ କର ପାନ ।
ହଟନ ସବୁ ଗୋପିମାନେ ମିଳ ଏକ ସ୍ଥାନେ ।
ନନ୍ଦ ରଜା ପୁତ୍ର କାହ୍ନୁ କଥା ଭାଳ ମନେ ହେ ।
ହୃଷ୍ଟଅ କଲା କହାଇ ମନେ ମନେ ବଲ ।
ନଭ ଅମ୍ଭ ଭୁବନରେ କରୁଛି ଅର୍ଦ୍ଦଳ ହେ ।
ଦଧି ଖାଇଦେଇ  ସବୁ ଭାଣ୍ଡ ଭାଙ୍ଗି ଦଏ ।
କ୍ଷୀର ପିଇ ଦେଇ କୋପେ ସିକାକୁ ଛିଣ୍ଡାଏ ହେ ।
ନାନା ରଙ୍ଗେ ନୃତ୍ୟ କରେ ବଂଶୀ କ ବଜାଇ ।

ସେ କଥା ମାନ କହିବା କାହ୍ନା ଅଟେ ସାକ୍ଷୀ ହେ ।
ଦଧି କ୍ଷୀର ମାଖନ ସବୁ ଖାଏଁ ଚୋରି କରି ।
ଦେଖା ଦେଲେ ଲୁଚି ଲୁଚି ପଳାଏ ସେ ଧୀରେ ହେ ।
ବାଳକ ବେଶ ହୋଇ ଦେଖ ଚୈତନ୍ୟ ଗୋସାଇଁ ।
ନନ୍ଦ ରାଜାଙ୍କୁ କହିବା ଯିବା ସର୍ବେ ଆସ ହେ ।
ଯଶୋଦା ସ୍ଥାନରେ ଅଟେ ଦେଖାଇବା ସେ ଦୋଷୀ ।
ଜାଣିଲେ ନିର୍ଦ୍ଦୋଷୀ ବୋଲି କହିବେ ଅସି ହେ
ଅମୃତ ଉପାସନା ଶ୍ରୀ ବନ୍ଧୁ ଲହି ଥିଲ ।
ଜୀବନ ପୋଷିବେ ବୃନ୍ଦ କାହ୍ନୁ ଚିତ୍ତ ଗଲା ହେ ।
ସେ ବାଳ କହ୍ନାଇ ନାମ ସଂସାରର ସାର ।
ମହାଦେବ ବୋଲେ ସର୍ବେ ଶ୍ରଦ୍ଧା ଭକ୍ତି କର ହେ ।

——ଃ(୦)ଃ——

ଏକ ଦିନେ ନନ୍ଦବାଳ ଗୋପଙ୍କ ଆଗରେ ।
ନାଚୁଛନ୍ତି ଭୋଳହୋଇ ପ୍ରେମ ଭରାଭରେ ।
ଏହି କାଳେ ନନ୍ଦରାଣୀ ଅଧି ପ୍ରବେଶିଲେ ।
ଗୋପିଙ୍କି ଅନାଇ ବେଗେ ଏମନ୍ତ ବୋଇଲେ ହେ ।
ଏକ କର୍ମ କରୁ ଅଛ ଅଗୋ ଗୋପବାଳୀ ।
କେତେ ପରସନ୍ନ ହେଲୁ ଶ୍ରୋଣୀ ବନମାଳୀ ଗୋ ।
ତବା କି ଦଇବ ଦିଏଛୁଲ ମୋ ବାଛାରେ ।
କି ଭାବ ନେଇ ଗୃହକୁ ଚାଲିଲା ଅମାରେ ହେ ।
ନାଚିଲେ ନାଚୁଛି କୃଷ୍ଣ ହୋଇଲେ ଅସ୍ଥିର ।
ନୀଳମଣି ଅଙ୍ଗ ବହେ ବେଢ଼ି ସ୍ୱେଦ ନୀର ହେ ।
ଯଶୋଦାଙ୍କ ବାଣୀ ଶୁଣି ବୋଇଲେ ଗୋପୀଗଣ ।
ଅଗେ ନନ୍ଦରାଣୀ ଗାଳି ଦିଅ କି କାରଣ ଗୋ ।
ଏହି କାହ୍ନୁ ଅମୃତ ଗୋ ଜୀବର ଜୀବନ ।

ତୁମ୍ଭ ସ୍ନେହ ନ ହୋଇବ ଅମୃତ ସମାନ ଗୋ ॥
ପୂର୍ଣ୍ଣ ଅଧିକାର ଅଛି ଶ୍ରୀକୃଷ୍ଣ ଅନ୍ତର ।
ମୋହିଲେ ତ ଅମ୍ଭ ଅଛନ୍ତି ନାଚନ୍ତି ଶ୍ରୀଧର ଗୋ ॥
ପୂର୍ବେ ବହୁତ ତପ କରିଥିଲେ ଗୋପୀଗଣ ।
ସ୍ୱୟଂ ଭଗବାନ ପାଦ ନିତ୍ୟେ ଦରଶନ ଗୋ ॥
ଦେବ ଶ୍ରେଷ୍ଠ ଧ୍ୟାନ କରି ଯାର ପଦ ଦର୍ଶନ ।
ନ ଲଭନ୍ତି ସେହୁ ପ୍ରଭୁଙ୍କେ କରନ୍ତି ଭ୍ରମଣ ହେ ॥
ମହାଦେବ ପାଳ ବୋଲେ ସେହୁ ପଦ ଚିହ୍ନ ।
ସାଧୁଜନ ନିଜନାମ ଜାଣ ହେବ ଛିଣ୍ଣ ॥

—— (୦) ——

ଶ୍ରୀ କୃଷ୍ଣଙ୍କୁ କହୁଛନ୍ତି ଧୀରେ ନନ୍ଦରାଣୀ ।
ଛାଡ଼ି ଦିଅ କହି ନ ଯା ବନେ ବେନୁ ଧାରିରେ ।
ଅଯୋଗ୍ୟ ଦୁଅରୁ ପଙ୍କେ ଗୃହେ ଥାଅ ବସି ।
ଦଧି ମଣ୍ଡ କ୍ଷୀର ଉପାମାଡି ଦେବା ଯୋଡିରେ ॥
ପଣ୍ଡିନେ ବାନ୍ଧିଣ ସ୍ନେହେ ଦେନା ଭୁଲାଇ ।
ଅପୂର୍ବ ପଦାର୍ଥ ଦେଖିଛ ଆଣି ହସ୍ତେ ଦେବି ରେ ॥
ମୁଁ ତଙ୍କ ଭୁ ଜନ୍ମ ମୋତେ ଦୁଃଖର ଜୀବନ ।
ଯେତେ ନ ଦେଖିଲେ ତୋତେ ଅସ୍ଥିର ମୋ ପ୍ରାଣ ॥
ଅନ୍ତର ଲଭୁଛି ମୋର ଦୁଃଖ ହିଁ ଧାର ।
ଅବୁଝା ଏତେ ପ୍ରେମ କହିଅ ଶ୍ରୀଧରରେ ॥
କାଖ ଛୋଡ଼ିଲେ ବଳା ଛନ୍ଦେ ନ ଯାଉ ଦଣ୍ଡେ ।
ନ ଦେଖିଲେ ତୋତେ ପ୍ରାଣ ନ ହେବ ପିଣ୍ଡେ ରେ ॥
ବନେ ନାନା କଷ୍ଟ ତାପ ଜପ ତରୁ ସହି
ଭାବେ ମହାଦେବ ପାଳ କୃଷ୍ଣ ପାଦ ଧ୍ୟାୟି ।

ଭଜରେ ସୁମନ ଗୋବିନ୍ଦ ଚରଣ
ଭବାର୍ଣ୍ଣବୁ ହେବୁ ପାରିବେ ।
ଏ ମାୟା ସଂସାର  କେବା କେ କାହାର
ମନେ ଗର୍ବ ବହୁ  ବୋଲୁଅଛୁ ମୋର
ଦାରା ସୋଦର  ଜନମ ପିଅର
ସର୍ବ ମିଥ୍ୟା ମନେ ଭାବରେ । ୧ ।
ଧନ ଯଉବନ  ଏ ଅଟେ ସ୍ୱପନ
ଜୀବନକୁ ଏତ  ନକରେ କାରଣ
ବିଷୟରେ ପଡ଼  ଜ୍ଞାନଦେଲୁ ଛାଡ଼ି
ତରିବୁ ତୁ କେଉଁ ପ୍ରକାରେ । ୨ ।
ଯେଉଁ ନାମ ଗୋଷ୍ଠ  ବ୍ରହ୍ମା ଶିବ ଧ୍ୟାନେ
ଭଜୁଛନ୍ତି ସଦା  ସର୍ବ ଦେବଗଣେ
ସେହି ନାମ ତୁହି  ଶୟନେ ସ୍ୱପନେ
ଚିନ୍ତ ଭବ ସିନ୍ଧୁ ତରରେ । ୩ ।
ନଭଜିଲେ ନାମ  ବାନ୍ଧି ନେବ ଯମ
ନରହିବ ତୋର  ଗର୍ବ ଠାଣ ଦମ୍ଭ
କେତେ ଦିନ ତୁହି  ଏ ଦେହରେ ରହୁ
ଦିନ କାଟୁଛୁଟି କହରେ । ୪ ।
ତୋ ମସ୍ତକ ବାଳ  ଧରଅଛି କାଳ
ନାହିଁ ତା ବଶ୍ୱର  ଯାହା ଇଚ୍ଛା ତାର
କରିବ ସେ କଥା  କେ କରେ ଅନ୍ୟଥା
ବେଳ ଥାଉ ବାଳ ବାନ୍ଧରେ । ୫ ।
ଦେଖୁଛୁ ନୟନେ  କେତେ କେତେ ଜନେ
ଛାଡ଼ି ଯାଉଛନ୍ତି  କେ କସ ନଥନ୍ତି
ମହାଦେବ ବୋଲେ  ନାମ ଭଜିଥିଲେ
ନଡରିବ ଯମ ଘରରେ । ୬ ।



# ବିଜ୍ଞାପନ

ଶ୍ରୀ ମହାଦେବ ଶୀଳଶର୍ମାଙ୍କ କୃତ ବୃହତ୍ ବେଙ୍ଗୁନ ଗୀତ, ନାନା ରାଗ ରାଗିଣୀ ଯୁକ୍ତ ଚତୁର୍ଦ୍ଦଶ ଛନ୍ଦରେ ପୂର୍ଣ୍ଣ । ବେଙ୍ଗୁନୁ ଦେଶର ପ୍ରଚଳିତ ପ୍ରକୃତ ଘଟଣାମାନ, ସ୍ୱଦେଶର ଚଳଣି, ଗୃହକର୍ତ୍ତୀମାନଙ୍କ ଚିନ୍ତା ଓ ଭାବନା ମେସ୍ତ୍ରିଙ୍କ ଛଳ ବ୍ୟବହାର, ବୃଦ୍ଧ ଉତ୍କଳବାସୀଙ୍କ ପ୍ରଣିଧାନଯୋଗ୍ୟ ଉପଦେଶ ଅର୍ଥାତ୍ ଘରୁ ଯିବାଠାରୁ ଘରକୁ ଫେରିବା ପର୍ଯ୍ୟନ୍ତ ସକଳ ବିଷୟ ସରଳ ସୁଲଳିତ ଓ ସ୍ପଷ୍ଟ ଭାବେ ବର୍ଣ୍ଣିତ ହୋଇଅଛି । ୪ ବର୍ଷ ମଧ୍ୟରେ ୧୦୦୦ ଖଣ୍ଡ ପୁସ୍ତକ ବିକ୍ରୟ ହୋଇଅଛି । ପୂର୍ବାପେକ୍ଷା କଳେବର ବୃଦ୍ଧି ପାଇଲେ ସୁଦ୍ଧା ଗ୍ରାହକମାନଙ୍କ ଆଗ୍ରହ ଦେଖି ପୂର୍ବମୂଲ୍ୟ ରଖାଯାଇଅଛି । ଯାହାରେ ଗ୍ରହଣ କଲେ ସମ୍ପୂର୍ଣ୍ଣ ସଫଳ ମନୋରଥ ହେବେ । ଅତି ସୁଲଭ ମୂଲ୍ୟ ଟ ୦ ୬

| | | | |
|---|---|---|---|
| ବେଙ୍ଗୁନ ଗୀତସାର | ଟ ୦ ୮ | ବେଙ୍ଗୁନ ରହସ୍ୟ | ଟ ୦ ୮ |
| ନୂତନ କୋଇଲିମାଳିକା | ଟ ୦ ୮ | ଭଜଗୋବିନ୍ଦ ଗୀତ | ଟ |
| ଭକ୍ତିଚନ୍ଦ୍ର ସଙ୍କୀର୍ତ୍ତନ | ଟ | ଭକ୍ତଜୀବନ ସଙ୍କୀର୍ତ୍ତନ | ଟ |
| ପ୍ରେମସାଗର ସଙ୍କୀର୍ତ୍ତନ | ଟ | ପ୍ରେମସୁଧା ସଙ୍କୀର୍ତ୍ତନ | ଟ |
| ପ୍ରେମାମୃତ ସଙ୍କୀର୍ତ୍ତନ | ଟ | ନାସ୍ତିପୋଦେଶ | ଟ ୧୯ |
| ଶ୍ରୀକୃଷ୍ଣ ବାଲ୍ୟଲୀଳା | ଟ | ସୁଦ୍ଧ ମାଳା | ଟ ୦ ୮୬ |
| ପଞ୍ଚଭାଷୀ ଶିକ୍ଷା | ଟ ୦ ୮ | ସତୀ-ଲକ୍ଷ୍ମୀ-ନାରୀଧର୍ମ (ଯନ୍ତ୍ରସ୍ଥ) | |

ଏହା ଛଡ଼ା ସକଳ ପ୍ରକାର ଓଡ଼ିଆ ପୁସ୍ତକ ଅମ୍ଭମାନଙ୍କ ପାଖରେ ସର୍ବଦା ଉପସ୍ଥିତ ଅଛି ବିକ୍ରି କରିବାକୁ ।

ହରିହର ପୁସ୍ତକାଳୟ

ନୂଆଗଡ଼

ପୋ.—ଷ୍ଟେରଡା